# ଭେଟୀ

# ଶୋକହ୍ବସ୍ମଣି ।

---

ଶ୍ରୀ ପାଟେଶ୍ୱର ସେନାପତିଙ୍କ ଦ୍ୱାରା

ବିରଚିତ ଏବଂ

ପ୍ରଥମବାର ପ୍ରକାଶିତ୍ୟ

---

Printed by Madan Mohan Nayak

at the Orissa Patriot Press.

Mahammadia Bazar

CUTTACK.

1901

ମୂଲ୍ୟ ୯ ° / ଏହିଆଣାମାତ୍ର ।

# ଦରଖାସ୍ତ

"ପରୋପକାରାୟ ସତାଂ ବିଭୂତୟଃ"

ବିବେକ ବୃନ୍ଦ ପୁରନ୍ଦର, ଆଶ୍ରିତବତ୍ସଳ, ସୁପ୍ରଶଂସିତ, ମାନ୍ୟବର,
ଶ୍ରୀଳ ଶ୍ରୀଯୁକ୍ତ ଶ୍ରୀଶ୍ରୀଶ୍ରୀ

ବହୁ ବିନୟପୂର୍ବକ ନିବେଦନ ମିଦଂ ।

ଶ୍ରୀମନ୍ମହାଭାଗ !

ମୁଁ ଜନ୍ମର ସାର୍ଥକତା ଲଭିବା ଆଶୟରେ ବହୁଦିନହେଲା ଶ୍ରୀ ରାଧା କୃଷ୍ଣଙ୍କର ପ୍ରେମପଞ୍ଚାମୃତ ଗ୍ରନ୍ଥକୁ ନାନାଛନ୍ଦବୃତ୍ତରେ ପ୍ରକାଶ କରିବା ନିମିତ୍ତ ଉତ୍କଣ୍ଠିତ ଅଛି । କିନ୍ତୁ ସାର୍ଦ୍ଧସପ୍ତ ଶତ ପରିମିତ ରଜତ ମୁଦ୍ରାର ଋଣ ଭ୍ରମିର ଯୋଗେ ସର୍ବଦା ସଚିନ୍ତ ଥିବାରୁ ସଫଳ ପ୍ରୟାସ ହୋଇପାରି ନାହିଁ ଅତଏବ ଉକ୍ତ ପ୍ରେମପଞ୍ଚା ମୃତ ରୂପକ ସୂର୍ଯ୍ୟଦେବଙ୍କର ରଥବାହକ ଅରୁଣଦେବ ସଦୃଶ ଏହି ଶୋକହର୍ଷମଣିଟିକୁ ଶ୍ରୀ ଛାମୁରେ ଅର୍ପଣ କରି ପ୍ରାର୍ଥୀ ହେଉଅଛି ଯେ ଶ୍ରୀ ହଜୁର ସ୍ୱକୀୟ ଦୀନ ଦୟାଳୁତା ଏବଂ ବଦାନ୍ୟତା ଗୁଣରେ କିଛି ଏକକାଳୀନ ଅର୍ଥ ସାହାଯ୍ୟ ପ୍ରଦାନ କରିବାକୁ ଆଜ୍ଞା ହେଉନ୍ତୁ ।

ପରିଶେଷରେ ନିବେଦନ ଏହି ଯେ ଉକ୍ତ ପ୍ରେମପଞ୍ଚାମୃତ ସୂର୍ଯ୍ୟଙ୍କୁ ଶ୍ରୀ ଛାମୁରେ ଉଦୟ କରାଇବା ନିମିତ୍ତ ଦୃଢ଼ତର କୃତଜ୍ଞତା ପାଶରେ ଅବଦ୍ଧ ରହିଲି ।

ଶ୍ରୀ ଶ୍ରୀ ଶ୍ରୀ ଛାମୁଙ୍କର ଦୁଷ୍ପ୍ରାପ୍ୟ ପ୍ରସାଦରତ୍ନ ପ୍ରାର୍ଥୀ
ଶ୍ରୀ ପାରେଶ୍ୱର ସେନାପତି

ହିପର୍ଦ୍ଧା ସ୍କୁଲ ହେଡ଼ପଣ୍ଡିତ । ଜି । କଟକ ପୋଃ ଅଃ ନିଆଳି ।

୨୫ । ୧୨ । ୧୯୦୦

# ଶୋକହରାମଣି ।

## ଗଣେଶଙ୍କ ଭଜନ ।

ସୁଭୂଷଣେ ନୀଳାବ୍ଦୁ କେସରକ । ବୃତ୍ତିରେ
ଲମ୍ବ ଉଦରେ । କର ଭକତ ମାନସ ସାଦରେ ।
ଚରଣ ଅବଳୀ କଳ ହେବୁ ଦଳ ନ ପଡ଼ିବୁ ପରମାଦରେ । ପଦ ।
ଉପଶମ ହେବ ଯମକ ଚମକ ଗର୍ଜନ ତର୍ଜନ ନାଦରେ ।
ଶୋପରେ ତୋପରେ ପରଜ୍ୱଳ ଯିବେ ଅପରଣୀ ପାଶପାଦରେ । ୧ ।
ନିର୍ଘାତ ସମାନ ବଜ୍ର ସଂଘାତର ବାଘାତ ଘଟା ନ କାନ୍ଦ ରେ ।
ଅଳ୍ପ ଦିବସରେ ସଂକଳ୍ପ ପୂରିବ ଉଦିତ ଆନନ୍ଦ ବୃନ୍ଦ ରେ । ୨ ।
ଯୋଗିଜନ ମନ ମୃଗ ବନ୍ଧନରେ ବୋଲାଇବ ଯେଣୁ ଫାନ୍ଦ ରେ ।
ସେହି ପଥା କୃଷ୍ଣ ପ୍ରେମ ପଞ୍ଚାମୃତ ବିରଚନ କର ଛନ୍ଦରେ । ୩ ।
ନ ଛପାଇଁ ତାଙ୍କୁ ଛପାଇବା ପାଇଁ ଦିଅ ତୁ ନବ ସମ୍ବାଦ ରେ ।
ଭଜ ଗଣେଶ୍ୱର ଭାବେ ପାରେଶ୍ୱର ଦିଅ କର ବିସମ୍ବାଦରେ । ୪ ।

---

## ଶ୍ରୀ ଲକ୍ଷ୍ମୀମୋହନଙ୍କ ଜଣାଣ ।

ଲକ୍ଷ୍ମୀମୋହନ ହେ ସୁଦର୍ଶନଚକ୍ର କର
ଚରଣ ଅବଲୀ ଗୁରୁ ହର ବଳବାରୁ ସଙ୍କଟ କଙ୍କର । ପଦ
କଣ୍ଟିତ ଯଣରେ ଦୁର୍ବୋଧ ପଣରେ ନ ଭଜ ତବ ସଧୁର ।
କରୁଣାସାଗର ପାନ କଲ ଗର ଏ ରୋଗ ବଳେଶପୁର । ୧ ।
ତ୍ରିମୂର୍ତ୍ତିଙ୍କର ନଗ୍ନ ନକର ଦେଖି ହୃଦସ୍ଥ ପଥର ।
ଅମ୍ବୁଜ ଭୂଷଣ ଯୁଗ ମଣି ଘଣ ହେଉଅଛି ଥରଥର । ୨ ।
ହୃଦସ୍ଥବିହାର ଦନୁଜ ସଂହାର ଧଣ୍ଡ ଧର ସର୍ବେଶ୍ୱର ।
ସଙ୍କଞ୍ଜି ହେ ମୁରହର ଦର ହର ଗଦାଧର ଅନଶ୍ୱର । ୩ ।

ପର କର ଶାଳୀ ଶୁଣି ଝାଳଭାଳ ଦନ ହେଉଛି ଅନ୍ତର ।
ସର୍ବ ଶକ୍ତି ମନ ବିକଳଇ ମନ ସୀମା ନ ରହେ ତ୍ରାସର । ୪ ।
ଉତ୍ତମଣ୍ଡି ସର୍ବ ଗର୍ବ କର ଖର୍ବ ସୁଦାମା ଦୈନ୍ୟ ଭଞ୍ଜନ ।
କୋଷାଗାରୁ ଧନ ଅକ୍ଷୟ ବର୍ଦ୍ଧନ ବିତର ଅଧମ ଜନ । ୫ ।
ପତିତ ବିପଦେ ପାରେଶ୍ୱର ବଦେ ପ୍ରଭୋ ପତିତପାବନ ।
ବିଧୃତ ମନ୍ଦର ହେବ କି ସୁନ୍ଦର ନ କଲେ ମୋର ଅବନ । ୬ ।

—*:0:*—

ଶ୍ରୀ ନାରାୟଣଙ୍କ ଜଣାଣ ।

ପ୍ରାଣବନ୍ଧୁରେ ( ବୃତ୍ତେ )

ନାରାୟଣ ହେ । ବନ୍ଦ ପ୍ରମୋଦେ ଏ ଦୀନ ସେ କଞ୍ଜ ଚରଣ । ପଦ ।
ଯେଉଁ ସକଳ ତୀର୍ଥ ଟଭଣ । ନକ୍ର ବଦନ ଗ୍ରସ୍ତ ବାରଣ ।
ବାରେ କଲାରୁ ଯା ସୁମରଣ । ହେଲେ କରଥିଲ ତାର ବିପତ୍ତି ହରଣ ॥
କ୍ଷମାତାର ଅତି ଅନାଦରେ । ନୃପତିଙ୍କ ଧ୍ରୁବ ବିଷାଦରେ ।
ଯାର ଶ୍ରୀମୁଖ ପରସାଦରେ । ଲଭି ଅଚିନ୍ତ୍ୟ ଆୟୁ ଅଭୟ ଭୁବନ । ୨ ।
ଯେ ପ୍ରବଳ ପର ଆଡମ୍ବର । ଭକ୍ତ ଯାହା-ବିରଞ୍ଚି ଶଙ୍କର ।
ତବ ବୋଲନ୍ତି ଛନ୍ତି କିଙ୍କର । ବିନା ବିଘ୍ନେ ଯେ କରେ ଅଭୀଷ୍ଟ ପୂରଣ
ଥରେ କଲେ ଯାହାର ଧିଆନ । ଅପସରେ ସଂସ୍ରବମାନ ।
ଅନ୍ୟେ ଅବେହି ଦେବବମାନ । ଜଣେ ଯାଅନ୍ତି ଜନ୍ତୁଏ ଅଜର ସଦନ । ୪
ପ୍ରଭୋ କୋଟିଜଗତ କାରଣ । କୃପାନିଧି ଆରତତାରଣ ।
ପାରେଶ୍ୱରଙ୍କୁ ଉତ୍ତମ ରଣ । ଦର କୁମ୍ଭୀର ମୁଖରୁ କର ନିସ୍ତାରଣ । ୫ ।

ଶ୍ରୀ ଦୁର୍ଗା ସ୍ତବ ।

ସ୍ୱପନେ ଅଜବରଜ ( ବୃତ୍ତେ )

କର ଲମ୍ବ ହିମାଳୟସୁତା ଶ୍ରୀପଦ ସାରସରେ । ପଦ ।
ଦୁର୍ଗା ଦୁର୍ଗତି ନାଶିନୀ, ଦାସ ମାନସ ବାସିନୀ ।
ଅନୁକମ୍ପା ପ୍ରକାଶିନୀ, ସଦା ଭାଷ ତୁ କରସରେ । ୧ ।

ହର ହୃଦୟ ହାରିଣୀ, ମହାସଙ୍କଟ ତାରିଣୀ ।
ମହିଷାସୁର ମାରିଣୀ, ଲକ୍ଷାନରଷୁରେ ଦରପରେ । ୨ ।
ଚଣ୍ଡିକେ ସର୍ବବ୍ୟାପିନି, ଅମ୍ବିକେ ବିଶ୍ୱରୂପିଣି ।
ମ ଭର୍ମହାପ୍ରଭାପିନି, ବୋଲି ଶରଣ ତୁ ପଶ ରେ । ୩ ।
ଅଭୟବର ଦାୟିନି, କାଳକେ ମହାକାୟିନି ।
ଜନନୀ ଯୋଗଧ୍ୟାୟିନି, ରଟ ରସନା ଅହ୍ନିଶରେ । ୪ ।
ପାରେଶ୍ୱର ମନସ୍ତାପ, ଜାତ ପ୍ରଳାପ କଳାପ ।
ବିନାଶେ ସୁଖ ଅମାପ, ସିନା ବଢ଼ିବ ମାନସରେ । ୫ ।

—:୦:—

ଶ୍ରୀ ହର ଭଜନ ।

କଳି ଦାରୁଣ ବୃଦ୍ଧି ( ବୃତ୍ତେ )

ମନ ଅତ ସାଦରେ କର ଭରସେ ଦରହର ପାଦରେ । ପଦ ।
ଲବ ମାତ୍ରରେ ଯେ ହେବାରୁ ବାମ ।
ନେତ୍ରାନଳେ ଭସ୍ମ ହୋଇଲା କାମ ॥
କାଳକୂଟ ଜାଳ ଯେ ପାନ କରି ।
ମୃତ୍ୟୁଞ୍ଜୟ ନାମ ଅଛନ୍ତି ଧରି । ୧ ।
ବାଞ୍ଛାନିଧି କୃପାନିଧି ଯାହାର ।
ନାମ ଯେ ଭୁବନ କରେ ସଂହାର ।
ଦାନବଦଳେ ଲଭିଲେ ଅପଦ ।
ଯଜନ୍ତି ଅମରେ ଯାର ଶ୍ରୀପଦ । ୨ ।
ଅଭିଧାନ ଯାର ଶଶିଭୂଷଣ ।
ନାଶଇ ଯେ ସେବକର କଷଣ ।
ତୁଣ୍ଡେ ରଟିବାରେ ଯାର କୀରତ ।
କରେ ପ୍ରଜାପତି ସଦା ପୀରତି । ୩ ।

ଖ୍ୟାତ ଯେ ଜଗତରେ ବିବୁଧବର ।
ଭକ୍ତାର ଯାହାର ଅଭୟବର ।
ଭୁଜଗେଶ୍ୱର ଯା ଗଳାର ହାର ।
ପାଦେ ପାରେଶ୍ୱର ବନ୍ଦୀ ତାହାର । ୪ ।

—୦○୦—

ସୂର୍ଯ୍ୟସ୍ତବ ।

ବଂଶୀବଦନେ ବନାଥ ମଣ୍ଡରେ ( ବୃତ୍ତେ )
ହେ ଦିନକର ।

ଘୀନଜନରେ କରୁଣା କର ହେ । ପଦ ।
ଜୟ ଜୟ ସର୍ବ ବୃଜିନ ଦହନ । ଜୟ ଛାୟାଦେବୀ ମାନସ ମୋହନ ।
ଜୟ ଜୟ ସପ୍ତଘୋଟକ ବାହନ । କର ବଧୂତ ପୁଷ୍କର ହେ । ୧ ।
ହେ ସୂର ମନ୍ଦାର କୁସୁମ ସୁନ୍ଦର । ଅହେ ତନୁବର୍ଗ ଖଗ ପୁରନ୍ଦର ।
ହେ ମିତ୍ର ପରମ ଅଗାଧ ମନ୍ଦର । ଦଶ ଶତ ଖର କର ହେ । ୨ ।
ତୁମ୍ଭେ କରତା ସେ ନୀରଦବୃନ୍ଦର । ଅହୃତ କର ଯେ ଧରଣୀରଜର ।
ଦର ହର ଜବେ ମୋର କରଜର । କାସ୍ୟପସୂତ ଭାସ୍କର ହେ । ୩ ।
ହେ ତମମାତଙ୍ଗ ପ୍ରମତ୍ତ କେସର । କାଲରୋଗ କେତେ କହିଲେ କ ସର
ଦରଶନେ ତବ ଗଲେ ଅପସର । ଭାବନା କ ସେବକର ହେ । ୪ ।
ରାଧା କୃଷ୍ଣ ପ୍ରେମ ପଞ୍ଚାମୃତ ରସ । ବସ୍ତାର କରେ ଯେ ମାନସ ସାରସ ।
ଛନ୍ଦ ଧାରରେ ତାହାଙ୍କୁ ଅକରଷ । ମୂଢ଼ ପାରେଶ୍ୱର ଜର ହେ । ୫ ।

—ଃ୦ଃ୦ଃ—

ଶ୍ରୀ ବିଷ୍ଣୁଙ୍କର ସ୍ତବ ।

ଏହାରୁ ପାଇଲୁ କାହିଁ ( ବୃତ୍ତେ )
ହର କଳୁଷ ବନ୍ଧାର ମହାବାହୁ ।

କଞ୍ଚିତ ମାତରେ ଅପାଙ୍ଗ ପାତରେ ଏ ଦୀନର ନରକାର । ମହାବାହୁ । ପଦ
ଜୟ ଜୟ ନନ୍ଦ ବ୍ରଜାନନ୍ଦକନ୍ଦ ନିକୁଞ୍ଜ ବନବିହାରୀ ।

ମୁକୁନ୍ଦ ମାଧବ ଗୋବିନ୍ଦ କେଶବ ପୂତନା ପ୍ରାଣ ସଂହାର ମହାବାହୁ ।୧।
ପତିତପାବନ ରାଧା ପ୍ରାଣଧନ ଗିରି ଗୋବର୍ଦ୍ଧନଧାରୀ ।
ହେ ନଟନାଗର ତାରକ ନାଗର ଦୁଃଖସିନ୍ଧୁ କର ପାର । ୨ ।
ହେ ପୀତଦୁକୂଳ ଅପରାଧ ଭୁଲ କରଅଛୁ ଅପାର ହେ ।
ହେ ମହିମାକୂଳ ସିନ୍ଧୁ ପ୍ରତିକୂଳ ହୋଇ ନ ପକାଅ ମତି । ୩ ।
ଅହେ ଜନାର୍ଦ୍ଦନ ହେ ମୁରମର୍ଦ୍ଦନ ଏହି ଆଜ୍ଞା କର ତାର ।
ଶ୍ରୀଚରଣ ଦାସ ଦାସ ଅନୁଦାସ ସ୍ୱଅର୍ଥେ ନୋହୁ ବଞ୍ଚାଅ ମହାବାହୁ ॥
ପାରେଶ୍ୱର ସ୍ୱାନ ଅତି ମହିମାନ ନୋହି ଅଧୀନ କାହାର ।
ହେଉ ନିରନ୍ତର ଅନନ୍ତ ମନ୍ତ୍ରର ନାମନିଷ୍ଠାନ୍ନ ଅହାରୀ ମହାବାହୁ । ୪ ॥

---

## ଶ୍ରୀ ବିଷ୍ଣୁ ସ୍ତବ

ବଂଶୀବଦନେ ବଳାଅ ମତ ( ବୃନ୍ଦେ )

ନରକାର

ଦୁଃଖ ସାଗରରୁ କର ପାର ହେ । ପଦ ।
ପାପ ପରଶେ ଅପାର ଅନୁପାର
ଅତୁଲ କରଜ ଗୁରୁତର ଭାର ।
ନୟନୁ ଲୋତକ ବହେ ଧାର ଧାର
ଦେଖି ହସନ୍ତି ଜଗତ ହେ । ୧ ।
ଦାଉ ମାନସ ସାରସେ ବସିବାର
ପାପି ପାପତାପ ହେଲେ ନାଶିବାର ।
ସୁଜନ ମୁଖରେ ଶୁଣି ବାରବାର
ହୃଦରେ ରଖିଛି ଗାଢ଼ ହେ । ୨ ।
ହେ କମଳାକାନ୍ତ ହେ କଂସକୃତାନ୍ତ
ତବ ଶ୍ରୀମୂର୍ତ୍ତିରେ ଅନାଥ ନିତାନ୍ତ

ଅରକ୍ତ ସରଜ ବିମଳ ବୃତ୍ତାନ୍ତ
କାଅଗେ ହେବ ଗୁହାରି ହେ । ୩ ।
ଘଟେ ପାରେଶ୍ୱର ବାଞ୍ଛାନିଧି ନାମ
ହୋଇବ କେତେବେଳକୁ ମୋର କାମ ।
ଛୁଣ୍ଡାଇ ନ ପାରି ମୀନପଣି ଦାମ
ବୋଲିବ କି ଗଲି ହାରି ହେ । ୪

---

## ଚନ୍ଦ୍ରସ୍ତବ ।

କହ ନାଥ କର ମୋତେ କାହିଁ ପାଇ ଗଢିଲରେ ( ଝୁଲେ )

କର ଅନୁକମ୍ପା କାମ ବାମ ମୁକୁଟ ସୁରକ । ପଦ ।
ହେ କ୍ଷୀରସିନ୍ଧୁ ନନ୍ଦନ, ନିଖିଳ ବିଶ୍ୱ ବନ୍ଦନ ।
ନ ଶୁଣିଲ କି କ୍ରନ୍ଦନ, ସାଧୁ ହୃଦ ବିଦାରକ । ୧ ।
ତବ ସ୍ମୃତିରେ ମାତିଲ, ଦରଦ୍ରୁପଣ ଅତୁଳ ।
ପାଇ ହେଉଛି ବାତୁଳ, ଲୋକ ଅଲୋକକାରକ । ୨ ।
ଜୟ ବିଧୁ ସୁଧାକର, ଜୟ ଚନ୍ଦ୍ର ଶୀତକର ।
ଦର ହରନ ଶଙ୍କର, ଜୟ ପାତକହାରକ । ୩ ।
ଜୟ ଚକୋର ତୋଷକ, ଜୟ ଜଗତ ପୋଷକ ।
ଜୟ କୁମୁଦ୍ୱିକାଶକ, ଜୟ ଅନନ୍ତ ଚରକ । ୪ ।
ହେ ପ୍ରଭୋ ଅମୃତକର, ରାଧା ନନ୍ଦବାଳକର ।
ପ୍ରେମାମୃତ ଶେଖର, ନରେ ରଖାଅ ଥରକ । ୫ ।
ମହାଗ୍ରହ ଶଶଧର, ପାରେଶ୍ୱର ଅବୋଧର ।
କ୍ଷମ ଅପରାଧର, ଦିଅ ଦଣ୍ଡ ନିବାରକ । ୬ ।

---

## ଶ୍ରୀ କୃଷ୍ଣ ଭଜନ

ଦକ୍ଷିଣୀ ଜଙ୍କ ଜନ୍ନ ( ଝୁଲ୍ଲେ )

ଗଲି ଯାଉ ସମସ୍ତ ମଧୁର ରସମସ୍ତ
ଶ୍ରୀ ହରି ଗୁଣ ଗଣନା ରେ । ପଦ ।
କେବା କୋପ କାରଣ, କୁବାଣୀ ଉଚ୍ଚାରଣ ।
କରିଲେ କଷ୍ଟ ଭଣନା ରେ । ୧ ।
କରି ଅନ୍ତ ଯତନ, ରାମନାମ ରତନ ।
ଘ୍ରତ ଭୁ ଅଜ କଣନା ରେ । ୨ ।
କୁମତି ତୋଷକର ଗ୍ରାମ ଗାଁ ତ ନନ୍ଦର ।
କଦାପି କାରେ ଶୁଣନା ରେ । ୩ ।
କୁମାର୍ଗ ବିଚରଣ, ପରଧନ ହରଣ ।
କେତେ ବେଳେତୁ ଜାଣିନା ରେ । ୪ ।
କାମ୍ଯମନ ଦଗନ, ଲଗାଇ ବିରଚନ ।
ବିଧାନ ନାମସ୍ମରଣା ରେ । ୫ ।
ବଦଇ ପାରେଶ୍ୱର, ଜଖିଲ ଲୋକେଶ୍ୱର ।
ନାମ କେବଳ ଲେଖନା ରେ । ୬ ।

---

## ✓ ଶ୍ରୀ କୃଷ୍ଣ ଜଣାଣ

ଦୀନ ବାନ୍ଧବନ୍ଧେ ( ଝୁଲ )

ପାଳସ୍ତମ୍ଭର ନେ ନୀଳ ଅଚଳ ବିହାର ।
ପେଷି ସୁଦର୍ଶନ ରକ୍ଷ ଏଜୀବନ ବୃଜନ ନକ୍ର ସଂହାର । ପଦ ।
ଅଧମ ଶରଣ ତବ ଶ୍ରୀଚରଣ ସାରସ୍ଯ ମାନସ ହଂସ ।
ନ ଭଜିତ କାରେ ଦୁଃଖ ପାଇବାରେ ମର୍କ୍ଷି କରୁଛୁ ଗୁହାଘ ।୧
ଅଗତି ତରାଏ କଡ଼ାଏ ପରାଣ ହୃଦ ଫୁଟାଇ ବାହାର ।

ରଖିଛୁ ପତ୍ରଣ କର ଦ୍ୱଇଗଣ ପରମ ଅଯୂ ପାନ୍ଥାଙ୍କ । ୨ ।
ସ୍ୱକୃପ ବଳରେ କାଳସ୍ୱବଳରେ ପଡ଼ ଗଲା ପରଦ୍ୱାର ।
ଜଣାପଡ଼ିଲାଣି ଜଗ୍ରେଜ ହେଲାଣି ସଂଶୟ ନାହିଁ କାହାର । ୩ ।
ଅହେ ଅଜେଶ୍ୱର ମାଗେ ପାରେଶ୍ୱର ପାପିଷ୍ଠ ଧର ଯୁଦ୍ଧାଙ୍କ ।
ଏହି ଅଜ୍ଞା କର ହେଉ ଏ କଙ୍କର ପଞ୍ଚାମୃତ ପ୍ରଭାବାଙ୍କ । ୪ ।

---

ଶ୍ରୀ ସରସ୍ୱତୀ ବନ୍ଦନ

ଖମାପଞ୍ଜୁ ହେଲୁ ( ବୃତ୍ତେ )

ଭଜ ମୂଢ଼ମତ ।

ଜଗତ ଜନନୀ ସରସ୍ୱତୀ ଭଗବତୀ ରେ । ପଦ ।
କୃତ ଭକତ ଅନ୍ତର ମନ୍ଦିର ବସତି ।
ବୀଣା ବିମୋହିନୀ ମହା ଅନୁକମ୍ପାବତୀ ରେ । ୧ ।
ପୁଣ୍ଡରୀକ ନେତ୍ର ପ୍ରଜାପତି ପଶୁପତି ।
ପୁରନ୍ଦର ଆଦ ଦେବ ପୂଜିତା ଭାରତୀ ରେ । ୨ ।
ବଲ୍ଲକୀ ମଣ୍ଡିତ କର ଗତି ହଂସ ଗତି ।
ଧବଳ ଦୁକୂଳମାଳା ଭୂଷିତ ଦେବତୀ ରେ । ୩ ।
ବରଜ କଟାକ୍ଷ ବୃଷଭାନୁଜା ଶ୍ରୀମତୀ ।
କୃଷ୍ଣପ୍ରେମ ପଞ୍ଚାମୃତ ସ୍ପୁରିବ ଘଟେତ ରେ । ୪ ।
ହୁରତ କରବ ଦୂରେ ଅପାର ବିନତ ।
ପାରେଶ୍ୱର ପ୍ରାପ୍ତ ହେବ ଅଚଳ ସମ୍ପତ୍ତି ରେ । ୫ ।

---

ଶ୍ରୀ ଚୈତନ୍ୟ ସ୍ତବ

ମୁକୁନ୍ଦ ତୋରେ ଶରଣ ଗଲି ( ବୃତ୍ତେ ) ।

ମାନସ ତେଜି ମାନ ଗୁମାନ ସଦା ସେବ ସେହି ଶଚୀସନ୍ତାନ । ପଦ ।
ଯାହାର ମୂର୍ତ୍ତିରୁ ଶିଖି ମୂରତି ଦେଖି ଦାସୀ ହେବେ କୋଟିଏ ରତି । ୧ ।

ପ୍ରଦାନେ ଯେହ୍ନୁ ଭଜନ ସମ୍ପତ୍ ବସ୍ତୁ ମର୍ତ୍ତୀରେ ଅବତରୁ ଛନ୍ତି । ୨
କୀର୍ତ୍ତନ ସୃଷ୍ଟିର ଯେହ୍ନୁ କରଣ ପଥ ଦର୍ଶାଇ ଅତ ଉଦାରତା । ୩ ।
ପତିତପାବନ ବାନା ଯାହାର ଉଡ଼ନ୍ତି ଅମ୍ବରେ ଦଶଇ ବାହାର । ୪ ।
ପାରେଶ୍ୱର ଭଣେ କଦର୍ଯ୍ୟାତ୍ମନ ଶ୍ରୀପଦେ ପଡ଼ ପ୍ରେମାନନ୍ଦେ ଦାନ । ୫ ।

———

ଶ୍ରୀ ଚୈତନ୍ୟ ନିତ୍ୟାନନ୍ଦ ଭଜନ ।

ନ ଯା ଯମୁନା ( ବୃତ୍ତେ ) ।

ଭଜ ଭୁମାଇ । ଚୈତନ୍ୟଚନ୍ଦ୍ର ନିତାଇ । ପଦ ।
ଦୂରେ ଯିବ ବିପଦ, ବୃଦ୍ଧି ହେବ ସମ୍ପଦ । ଦିନକୁ ଦିନ । ୧ ।
ଆୟୁ ଆରୋଗ୍ୟ ବଳ, ସଂଙ୍ଗ ବିବିଧ ଫଳ । ଲଭିବୁ ସୁଖେ । ୨
ଆନ ଆନ ସୁମନା, ପୂଜିବାକୁ ସୁମନା । କଦାନ୍ତୁଅନା । ୩ ।
କୀର୍ତ୍ତନ ମଣ୍ଡଳରେ, ପଶିସାଧୁ ମେଳରେ । କର ନର୍ତ୍ତନ । ୪ ।
ଅତି ଅଧମ ନର, ପାରେଶ୍ୱର ପାମର । ଗୀତେ ରଚଇ । ୫ ।

———

ଶ୍ରୀ ଲକ୍ଷ୍ମୀଦେବୀ ବନ୍ଦନ ।

ଅରେ ପ୍ରାଣସଙ୍ଗୀ ( ବୃତ୍ତେ ) ।

ମାଗୋ ଗିରଧାରି । ପ୍ରିୟେ କ୍ଷୀରସମୁଦ୍ର ସିନ୍ଧୁ ସୁକୁମାରି । ପଦ ।
ଏ ଅଧମ ସୁତ ଅଶରଣ । କରେ ଦ୍ୱନ୍ଦ୍ୱ ମନ୍ଦ ଆଚରଣ ।
କେବେ ସ୍ୱପନରେ ବିଭ୍ରାନ୍ତ ମନରେ, ଭଜନାହିଁ ତବ ଶ୍ରୀଚରଣ । ୧ ।
ବିହଇ ବନଜ ମାନବରେ, ଭୁଲଇ ଗୋଷ୍ପଦ ଅର୍ଣ୍ଣବରେ ।
ଦୁର୍ବୋଧ ପାମର ଯେ ଅପରାଧରେ, ହୋଇଅଛି ହୀନ ବିଭବରେ । ୨
ଅଶନ ଶୟନ ବସନରେ ପାଇବାର କଷ୍ଟ ବଚନରେ ।
କହ ହେବନାହିଁ ଘନ ଅନ୍ଧକାର, ଅଧିକାର କରେ ନୟନରେ । ୩ ।

ନାହିଁ ତ ତାହାର ଶୁଣିବାର, କୁପୁତ୍ରରେ ମାତା କୋପିବାରୁ ।
ଷମା ରତ୍ନାକର ଷମାକର ପୁତ ପାରେଶର ଅପରାଧ ବାର । ୪ ।

---

ଶ୍ରୀ ଲକ୍ଷ୍ମୀ ନୃସିଂହ ଭଜନ ।

ବହୁନାଷୀ କର ( ବୃତ୍ତେ ) ।

ଲକ୍ଷ୍ମୀ ନରସିଂହ ବୋଲି, ଦିବା ରଜନୀ ଘୋଷିବ ।
କୋଟି ପରଚନ୍ଦ୍ର ଦଶ୍ରଥର ଦଣ୍ଡ ବିନାଶିବ । ପଦ ।
ପଦ ତୁଳସୀ ଯାହାର, ହର କଣ୍ଠରେ ଗଳାହାର ।
କେଉଁ ଗୁଣରେ ତାହାର ଦାସ ବୋଲି ନ ଭଜିବ । ୧ ।
ଯେତେ ଯେତେ ପାପରସ୍ତ, କରି ଅଛୁ ମୁଁ ସମସ୍ତ !
ହେଲେ ତାର ଅପରସ୍ତ, ଭକ୍ତଗଣରେ ଉଲ୍ଲସିବ । ୨ ।
ସେହି ମୋର ବରଧନ, କର ତାର ଆରାଧନ ।
ବହୁ ଅପ୍ରତ ସାଧନ, ହୋଇ ନିଶ୍ଚିନ୍ତ ବସିବ । ୩ ।
ପଞ୍ଚାମୃତ ସହକରେ, ରଚିବ ଛନ୍ଦ ବ୍ରଜରେ ।
ବାସ କରିବ ବ୍ରଜରେ, ମତ ଯନ୍ତ୍ରେ ଶୋଭିବ । ୪ ।
ପାରେଶର ଏ ବଚନ, ଗିଟେ କର ବିବେଚନ ।
ଭାବେ କଳ୍ମଷ ମୋଚନ, ଶ୍ରୀଚରଣରେ ପଶିବ । ୫ ।

---

ଶ୍ରୀକୃଷ୍ଣ ଭଜନ ।

ପୀତପଟ ନିପଟ ପ୍ରୀତ କରି ଶ୍ରୀମତୀଙ୍କି ଜଡ଼ାଇଲ ( ବୃତ୍ତେ )
ନବଜଳଧର ସୁରୁଚି ରୁଚିର ଶ୍ୟାମଳ କଳେବର ଦେହ । ପଦ ।
ହୋଇ ଅତି କୁମତ ବସ । କରୁଅଛୁ କେତେ ସାହସ ।
ଖଞ୍ଜି ତନୁ ଗର୍ବେ ପଞ୍ଚ ଶରଧାରୀ ଧରଣେ ଟେକାଇ ଯେତେକେ କର ଦେହ । ୧
ହରି ବ୍ରହ୍ମା ଯାହା ପାଦରେ ! ତୁଳସୀରେ କରି ଆଦର ।

କୃତ କୃତ୍ୟମଣି ତା ଶିରେ ଧରନ୍ତି ଛାର କି ପାମର ଦୀକ୍ଷା କର ହେ । ୨ ।
ଅବକ୍ତବ୍ୟ ଯେ ଅନନ୍ତରେ । ଯାହା ସତ୍ୟବନ୍ତ ମୃତରେ ।
ବିରଚିତ୍ ସେହି ପଞ୍ଚାମୃତରସ ଲୋଭ କରୁଅଛୁ ବର ବର ହେ । ୩ ।
ତବ କୃପାବାରି ବରଷା । ପାଟରେଶ୍ୱର କରେ ଭରଷା ।
ବିଦ୍ରୋହି ବିଦ୍ରୋହ ଦାବରେ ବିଦଗ୍ଧ ହେବା ପାଇଁ କରିହିବ ପର ହେ ।

---

## ଶ୍ରୀକୃଷ୍ଣ ଭଜନ ।

ବିନା ଅପରାଧେ ବିଧେ ରୁଷିକା ( ବୃତ୍ତେ )

ଗୋବିନ୍ଦ ମୁକୁନ୍ଦ ନନ୍ଦନନ୍ଦନ ହେ ବୃଷଭାନୁସୁତା ହୃଦ ଚନ୍ଦନ ହେ । ପଦ
ଜୟ ଜଗତ କାରଣ । ଜୟ ତାରଣ ତାରଣ ।
ସଦାନନ୍ଦ କନ୍ଦ ବଂଶୀବଦନ ହେ । ୧ ।
ଜୟ ଗୋପପୁରନ୍ଦର । ଜୟ ମଦନ ସୁନ୍ଦର ।
ଜୟ ଜୟ କୋଟି କଣ୍ଠ ବନ୍ଦନ ହେ । ୨ ।
ବ୍ରଜ କମଳ ଭାସ୍କର । ଗୋପୀ ଦୁକୂଳ ତସ୍କର ।
ଜୟ ଜନାର୍ଦ୍ଦନ ମଧୁସୂଦନ ହେ । ୩ ।
ଜୟ ଯଶୋଦା ବାଳକ । ଜୟ ଗୋପାଳ ପାଳକ ।
ଜୟ ମୁରସୁର ପର ମର୍ଦ୍ଦନ ହେ । ୪ ।
ନରକାରି କଂସ କାଳ । ସେବକ ପାତକ କାଳ ।
ହର ହର ହର ହୃଦ ସଦନ ହେ । ୫ ।
ପାଟରେଶ୍ୱରଙ୍କୁ ସୁକୃତ । ଦିଅ ପ୍ରେମପଞ୍ଚାମୃତ ।
ତନ୍ତ୍ର ଛନ୍ଦବରେ କରୁ ଗନ୍ଧନ ହେ । ୬ ।

ସମାପ୍ତ ।